ଲିଓ ଟଲ୍‌ଷ୍ଟୟ

# ତିନିଟି ଭାଲୁ



## ଲିଓ ଟଲଷ୍ଟୟ

# ତିନିଟି ଭାଲୁ



ଅଙ୍କନ · ୟୁରି ଭାସ୍‌ନେତ୍‌ସୋଭ

ଅନୁବାଦ · ସ୍ୱର୍ଣ୍ଣଲତା ପରିଡ଼ା



"ରାଦୁଗା" ପ୍ରକାଶନ
ମସ୍କୋ



ଥରେ ଗୋଟିଏ ଝିଅ ବଣରେ ବୁଲୁବୁଲୁ ବାଟବଣା ହୋଇଗଲା । ଘରକୁ ଫେରିବା ପାଇଁ ବାଟ ଖୋଜି ଖୋଜି ଶେଷକୁ ଯାଇ ପହଞ୍ଚିଲା ବଣରେ ଥିବା ଗୋଟିଏ କୁଡ଼ିଆରେ ।



କୁଡ଼ିଆଟିର କବାଟ ମେଲା ଥିଲା : ସେ ଭିତରକୁ ଉଙ୍କିମାରି ଚାହିଁ ଦେଖିଲା – ଘରେ କେହି ନାହାନ୍ତି , ତେଣୁ ଭିତରକୁ ପଶିଲା । ଏହି କୁଡ଼ିଆଟିରେ ତିନୋଟି ଭାଲୁ ରହୁଥିଲେ । ପ୍ରଥମ ଭାଲୁଟି ଥିଲା ବାପା ଭାଲୁ , ନାଁ ତା'ର ମିଖାଇଲ୍ ଇଭାନିଚ୍ । ସେ ଦେଖିବାକୁ ଭାରି ବଡ଼ ଆଉ ଦେହଟା ତା'ର ରୁମରେ ଢଙ୍କା । ଦ୍ୱିତୀୟ ଭାଲୁଟି ଦେଖିବାକୁ ଟିକେ ସାନ , ତା ନାଁ ନାଶ୍‌ତାଶ୍ୟା ପେତ୍ରୋଭ୍‌ନା । ତୃତୀୟ ଭାଲୁଟି ଥିଲା ସବୁଠାରୁ ସାନ , ନାଁ ତା'ର ମିଶୁତ୍‌କା । ଭାଲୁମାନେ କେହି ଘରେ ନଥିଲେ , ଜଙ୍ଗଲକୁ ବୁଲିବାକୁ ଯାଇଥିଲେ ।



କୁଡ଼ିଆଟିରେ ଦୁଇଟି ବଖରା ଥିଲା । ସେଥି ମଧ୍ୟରୁ ଗୋଟିଏ ହେଲା ଖାଇବା ଘର, ଅନ୍ୟଟି ଶୋଇବା ଘର । ଝିଅଟି ଖାଇବା ଘର ଭିତରକୁ ଯାଇ ଦେଖିଲା, ଟେବୁଲ ଉପରେ ତିନୋଟି ଚାମଚ ଆଉ ତିନି ପ୍ଲେଟ୍ ସୁପ୍ ଥୁଆ ହୋଇଛି । ପ୍ରଥମ ପ୍ଲେଟ୍‌ଟି ସବୁଠାରୁ ବଡ଼, ବାପା ଭାଲୁ ମିଖାଇଲ୍ ଇଭାନିଚ୍‌ଙ୍କର । ଦ୍ୱିତୀୟ ପ୍ଲେଟ୍‌ଟି ତାଠାରୁ ଟିକିଏ ଛୋଟ, ମା ଭାଲୁ ନାଶ୍‌ତାଶ୍ୟା ପେଟ୍ରୋଭ୍‌ନାଙ୍କର । ତୃତୀୟ ନେଳିଆ ପ୍ଲେଟ୍‌ଟି ହେଲା ମିଶୁତ୍‌କାର । ପ୍ରତିଟି ପ୍ଲେଟ୍ ପାଖରେ ଗୋଟିଏ ଲେଖାଏଁ ଚାମଚ ଥୁଆ ହୋଇଥିଲା – ବଡ଼, ମଝିଆଁ ଓ ଛୋଟ ।



ଝିଅଟି ସବୁଠାରୁ ବଡ଼ ଚାମଚଟି ଧରି ସବୁଠାରୁ ବଡ଼ ପ୍ଲେଟ୍‌ରୁ ସୁପ୍ ଟିକିଏ ଚାଖିଲା । ତା'ପରେ ମଝିଆଁ ଚାମଚଟି ଧରି ମଝିଆଁ ପ୍ଲେଟ୍‌ରୁ ସୁପ୍ ଚାଖିଲା । ଶେଷରେ ଛୋଟ ଚାମଚଟିରେ ଛୋଟ ପ୍ଲେଟ୍‌ରୁ ସୁପ୍ ଚାଖିଲା । ମିଶୁତ୍‌କାର ପ୍ଲେଟ୍‌ଟି ତା ମନକୁ ପାଇଲା ।

ଝିଅଟି ଟିକିଏ ବସି ପଡ଼ିବା ପାଇଁ ଭାବି ଦେଖିଲା ଟେବୁଲ ପାଖରେ ତିନୋଟି ଚୌକି ଥୁଆ ହୋଇଛି : ପ୍ରଥମଟି ବଡ଼ ମିଖାଇଲ୍ ଇଭାନିଚ୍‌ଙ୍କର, ଅନ୍ୟଟି ଟିକେ ଛୋଟ ନାଶ୍‌ତାଶ୍ୟା ପେଟ୍ରୋଭ୍‌ନାଙ୍କର, ତୃତୀୟଟି ସବୁଠାରୁ ସାନ । ସେଥିରେ ନେଳିଆ ଗଦି ଲଗା ହୋଇଥାଏ, ସେଟି ମିଶୁତ୍‌କାର । ଝିଅଟି ବଡ଼ ଚୌକିରେ ବସୁ ବସୁ ତଳେ ପଡ଼ିଗଲା ; ତା'ପରେ ଯାଇ ବସିଲା ମଝିଆଁ ଚୌକିଟିରେ, ହେଲେ ତାକୁ ଆରାମ ଲାଗିଲାନି । ତେଣୁ ଶେଷରେ ଯାଇ ବସି ପଡ଼ିଲା ଛୋଟ ଚୌକିଟିରେ । ସେଥିରେ ତାକୁ ବସିବାକୁ ବେଶ୍ ଭଲ ଲାଗିଲା । ଟିକେ ହସିଦେଇ, ସେ ନେଳିଆ ପ୍ଲେଟ୍‌କୁ କୋଳରେ ରଖି ସୁପ୍ ଖାଇବାକୁ ଲାଗିଲା । ସୁପ୍‌ତକ ଖାଇ ସାରିଲା ପରେ ଚୌକିରେ ବସି ଝୁଲିବାକୁ ଲାଗିଲା ।

ଏତେ ଜୋରରେ ସେ ଝୁଲିଲା ଯେ, ଚୌକିଟି ଭାଙ୍ଗିଗଲା । ଝିଅଟି ତଳେ ପଡ଼ିଗଲା । ତା'ପରେ ଉଠିପଡ଼ି ଚୌକିଟିକୁ ତଳୁ ଉଠେଇ ନେଇ ଅନ୍ୟ ବଖରାଟିକୁ ଗଲା । ସେଠି ତିନୋଟି ଖଟ ପଡ଼ିଥିଲା । ଗୋଟିଏ ବଡ଼ –



ମିଖାଇଲ୍ ଇଭାନିଚ୍‌ଙ୍କର , ଅନ୍ୟଟି ମଝିଆଁ – ନାଶ୍‌ତାଶ୍ୟା ପେଟ୍ରୋଭ୍‌ନାଙ୍କର , ତୃତୀୟଟି ସାନ – ମିଶୁତ୍‌କାର । ଝିଅଟି ବଡ଼ ଖଟରେ ପ୍ରଥମେ ଯାଇ ଶୋଇପଡ଼ିଲା – ତା'ର ମନେହେଲା ଖଟଟି ଭାରି ବଡ଼ । ତା'ପରେ ଯାଇ ଶୋଇଲା ମଝିଆଁ ଖଟଟିରେ – ସେଟା ମନେହେଲା ଭାରି ଉଚ୍ଚ । ଶେଷରେ ଯାଇ ଶୋଇଲା ଛୋଟ ଖଟଟିରେ – ଖଟଟି ଠିକ୍ ତା'ରି ମାପର ଥିଲା , ତେଣୁ ସେ ସେଥିରେ ଶୋଇପଡ଼ିଲା ।



ଭାଲୁମାନେ ବୁଲିବୁଲି ଭୋକରେ ଆଉଟି ପାଉଟି ହୋଇ ଘରକୁ ଫେରିଲେ । ବଡ଼ ଭାଲୁଟି ନିଜ ପ୍ଲେଟ୍‌କୁ ଧରି ଦେଖିଲା, ଆଉ ଭୟଙ୍କର ଭାବେ ପାଟି କରି କହିଲା :

"କିଏ ମୋ ପ୍ଲେଟ୍‌ରେ ମୁହଁ ମାରିଛି ?"

ନାଶ୍‌ତାଶ୍ୟା ପେଟ୍ରୋଭ୍‌ନା ନିଜ ପ୍ଲେଟ୍‌କୁ ଚାହିଁ ତାଠାରୁ ଟିକେ କମ୍ ଜୋରରେ ପାଟିକଲେ :

"କିଏ ମୋ ପ୍ଲେଟ୍‌ରୁ ସୁପ୍ ଚାଖିଛି ?"

ମିଶୁତ୍‌କା ନିଜ ଖାଲି ପ୍ଲେଟ୍‌ଟାକୁ ଚାହିଁଦେଇ ପତଳା ଚେଁଚେଁଇଆ ଗଳାରେ କହିଉଠିଲା :

"କିଏ ମୋ ପ୍ଲେଟ୍‌ରୁ ସୁପ୍ ଚାଖୁ ଚାଖୁ ସବୁ ସୁପ୍ ଖାଇଦେଇଛି ?"

ମିଖାଇଲ୍ ଇଭାନିଚ୍ ନିଜ ଚୌକିକୁ ଦେଖିଦେଇ ଭୟଙ୍କର ଗଳାରେ ପାଟି କରି ଉଠିଲେ :

"କିଏ ମୋ ଚୌକିରେ ବସି, ଚୌକିଟାକୁ ତା ଜାଗାରୁ ଘୁଞ୍ଚେଇ ଦେଇଛି ?"

ନାଶ୍‌ତାଶ୍ୟା ପେଟ୍ରୋଭ୍‌ନା ନିଜ ଚୌକିକୁ ଦେଖିଦେଇ ତାଠାରୁ ଟିକେ କମ୍ ଜୋରରେ ପାଟି କରିଉଠିଲେ :

"କିଏ ମୋ ଚୌକିରେ ବସି ତାକୁ ଘୁଞ୍ଚେଇ ଦେଇଛି ?"

ମିଶୁତ୍‌କା ନିଜ ଭଙ୍ଗା ଚୌକିକୁ ଦେଖି ତା ସରୁ ପତଳା ଗଳାରେ ଚେଁଚେଁ ହୋଇ କହିଲା :

"କିଏ ମୋ ଚୌକିରେ ବସି, ତାକୁ ଭାଙ୍ଗି ଦେଇଛି ?"



ତା'ପରେ ଭାଲୁମାନେ ଅନ୍ୟ ଘରକୁ ଗଲେ ।

"କିଏ ମୋ ବିଛଣାରେ ଶୋଇ , ତାକୁ ଲେସ୍କୋସ୍ କରିଦେଇଛି ?" ଭୟଙ୍କର ଭାବେ ପାଟିକରି ବାପା ଭାଲୁ ମିଖାଇଲ୍ ଇଭାନିଚ୍ ପଚ୍ଚରିଲେ ।

"କିଏ ମୋ ବିଛଣାରେ ଶୋଇ ତାକୁ ଲେସ୍କୋସ୍ କରି ଦେଇ ଯାଇଛି ?" ମା ଭାଲୁ ଟିକେ ଆସ୍ତେ ପାଟିକରି କହିଲେ ।

ଶେଷକୁ ମିଶୁତ୍କା ତା ବିଛଣାକୁ ଯିବା ପାଇଁ ଗୋଟିଏ ଟୁଲ୍ ଉପରକୁ ଚଢ଼ିଯାଇ ତା'ର ସରୁ ଗଳାରେ କହି ପକେଇଲା :

"ମୋ ବିଛଣାରେ ମଧ୍ୟ କିଏ ଜଣେ ଶୋଇ ?.." କହୁକହୁ ହଠାତ୍ ସେ ଝିଅଟିକୁ ଦେଖିଲା ; ସଙ୍ଗେ ସଙ୍ଗେ ସରୁ ଗଳାରେ ଚିତ୍କାର କରିଉଠିଲା :

"ହେଇ ସେ ଶୋଇଛି ! ଧର ! ଧର ତାକୁ ! ହେଇ ! ଧର ତାକୁ !"

ମିଶୁତ୍କା ତାକୁ କାମୁଡ଼ି ପକେଇବାକୁ ଯାଉଥିଲ, ଏତିକି ବେଳେ ଝିଅଟି ଆଖି ଖୋଲି ଦେଖିଲ, ସାମନାରେ ତା'ର ତିନିଟି ଭାଲୁ । ସେ ଖୋଲ ଝରକା ପାଖକୁ ଧାଇଁଯାଇ ଆଖିପିଛୁଳାକେ ଝରକା ବାହାରକୁ ଡିଆଁଟାଏ ମାରିଦେଲ ।

ତା'ପରେ ଏତେ ଜୋରରେ ଦୌଡ଼ିଲ ଯେ, ଭାଲୁମାନେ ତାକୁ ଆଉ ଧରି ପାରିଲେ ନାହିଁ ।



